# ସଂସେରା-ବିଲାପ



ପ୍ରଣେତା

ଶ୍ରୀମତୀ ଶ୍ରୀ ଶ୍ରୀକୃଷ୍ଣପ୍ରିୟା ଦେବୀ
(ଶ୍ରୀ ଶ୍ରୀ ବାହୁବଳେନ୍ଦ୍ର ହରିକୃଷ୍ଣ ଦେବରାୟଙ୍କ ସହଧର୍ମିଣୀ)

ପ୍ରକାଶକ
ସଂସେରାଧୀଶ୍ୱର
**ଶ୍ରୀ ଶ୍ରୀ ଶ୍ରୀ ନୃପତିସିଂହ ଦେବ**



ମୁଦ୍ରାକର—ଶ୍ରୀ ହାଡ଼ୁ ରସୁଲୁ
**ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍**
ବ୍ରହ୍ମପୁର ( ଗଞ୍ଜାମ )
୧୯୩୮

ବିନାମୂଲ୍ୟେ ବିତରିତ

## ଉତ୍ସର୍ଗ

ଯାହାଙ୍କ ଲାଳନ ପାଳନରେ ଅବାଲ୍ୟ ମାତୃ ବିଯୋଗ ଦୁଃଖ
ହୃଦୟ ପଟରେ ସ୍ଥାନ ପାଇ ପାରିନାହିଁ, ଯାହାଙ୍କ
ଉପଦେଶାମୃତ ଜ୍ୱାଳାମୟୀ ସଂସାରର ଅମୀୟ
ମନ୍ଦାକିନୀଧାରା ସଦୃଶ ଉପଭୋଗନୀୟ,
ସେହି ମଞ୍ଜୁଷାଧୀଶ୍ୱରୀ ମୋର
ଆତ୍ମୀୟା ମାତୁଳୀ ଓ ଧର୍ମ
ଜନନୀ ସ୍ୱର୍ଗୀୟା
**ଶ୍ରୀ ଶ୍ରୀ ଶ୍ରୀ ରତ୍ନମାଳା ପଟ୍ଟମହାଦେଈଙ୍କ**
ଶ୍ରୀ ଚରଣ ପାଦୁକାରେ ଭକ୍ତିର ନିଦ-
ର୍ଶନ ସ୍ୱରୂପ ଏହି 'ସଂସାର
ବିଳାପ'ଟି କୃତାଞ୍ଜଳି
ପୁଟରେ ଅର୍ପଣ
କରୁଅଛି ।



ମାଛମର
୪-୧୦-୧୯୩୮

—ଲେଖିକା—

# ନିବେଦନ

ମୋର ଭକ୍ତଭଜନ ଅଗ୍ରଜ ଦେବତା ପତିଙ୍କ ଉତ୍ସାହରେ ଅନେକ ସମୟରେ କବିତା ପ୍ରତି ଦୃଷ୍ଟି ଗଲେ ସୁଦ୍ଧା ସେହି ମହତ୍ ଭାବନାର ବହୁ ଦୂରରେ ମୁଁ । ଆଜ ମୋର ଭ୍ରାତୃ-ବଧୂ ସ୍ୱର୍ଗୀୟା ଶ୍ରୀଶ୍ରୀ ଲକ୍ଷ୍ମୀମାଳା ଦେବୀ ସପତ୍ନୀ ଯୁବରାଣୀଙ୍କ ୪-୪-୧୯୩୮ ଚୈତ୍ର ଶୁକ୍ଳ ଚତୁର୍ଥୀ ରାତ୍ର ୧୨ ଘଣ୍ଟା ସମୟରେ ଅକାଳ ବିୟୋଗ ବିଷୟରେ ଯାହା ଖଣ୍ଡେ ଅଧେ ଲେଖିଅଛି, ଏହା ମୋର ପ୍ରଥମ ଉଦ୍‌ଯୋଗ । ଏଥିରେ ଅନେକ ସ୍ଥାନରେ ତ୍ରୁଟି ଅଛି । ସହୃଦୟ ପାଠକ ପାଠିକାଙ୍କ ନିକଟରେ ମୋର ଏତିକ ବିନୀତ ପ୍ରାର୍ଥନା ଯେ, ମିଶ୍ରିତ ନୀର-କ୍ଷୀରରୁ ନୀର ଯଦ୍ରୂପ ହଂସୀର ପକ୍ଷେ ତ୍ୟାଜ୍ୟ, ତଦ୍ରୂପ ମୋର ଏହି କ୍ଷୁଦ୍ର ବୁଦ୍ଧି-ସ୍ଖଳିତ 'ସପତ୍ନୀ-ବିଳାପ'ରୁ ଅବିଳତା ତ୍ୟାଗ କରି ଭାବଟି ମାତ୍ର ଗ୍ରହଣ କଲେ ଏହି ଅବଳା ଜୀବନକୁ ସାର୍ଥ ମନେ କରିବ । ଇତି ।

ମାଛମରା
୪ । ୧୦ । ୩୮

ଲେଖିକା—

# ବିଜ୍ଞପ୍ତି

ଯାହାଙ୍କ ବଚସ୍ପୁରେ ମୋର ନବର ଅମରାବତୀର ଆଭା ବିସ୍ତାର କରୁ-ଥିଲା, ଯାହାଙ୍କ ସୁକୋମଳ ବାଣୀ-ବୀଣା ଝଙ୍କାରରେ କି ଦାସ, କି ଦାସୀ, କି ପ୍ରଜା ସମସ୍ତଙ୍କ ଚିତ୍ତ ମୁଗ୍ଧ ଓ ସ୍ତମ୍ଭିତ ହେଉଥିଲା, ସେହି ମମ-ସାମ୍ରାଜ୍ୟ--ଲକ୍ଷ୍ମୀ-ସ୍ୱରୂପିଣୀ ଯୁବରାଣୀ ସାହେବାଙ୍କୁ ଅକାଳେ ହରାଇ ଭ୍ରାତୃବଧୂ-ବିରହ-ଶୋକସନ୍ତପ୍ତ-ହୃଦୟା ମୋର **ପଟ୍ଟଃ କ୍ଷେମାମଣିଙ୍କ** ବିରଚିତ ଏହି 'ଝପେର ବିଳାପ' ପ୍ରକାଶ କରିବାକୁ କ୍ଷେମାମଣି ଅନିଚ୍ଛୁକା ହେଲେ ସୁଦ୍ଧା କତିପୟ ସ୍ୱଜନଙ୍କ ଅନୁରୋଧରୁ ଏହା ପ୍ରକାଶ କରିବାକୁ ବାଧ୍ୟ ହେଲି । ଇତି ।

ଝପେର ରାଜବାଟୀ
୪ । ୧୦ । ୩୮

ଶ୍ରୀ ଶ୍ରୀ ନୃପତିସିଂହ ଦେବ
ଝପେରାଧୀଶ୍ୱର

# ସଂସେରା-ବିଲାପ



୧

## ରାଗ—ରସକୁଲ୍ୟା

ଚଇତ୍ର ଶୁକ୍ଳ ଚତୁର୍ଥୀ ନିଶୀଥ ସ୍ମରଣେ ହୃଦୟ ହୁଏ ଅରତ
ଅହା କି ବିପତ୍ତି ଅସି ପଡ଼ିଲା ସ୍ୱପନେ ଭାବନା ଯାହା ନଥିଲା
ଦଇବ ତ ଏହା କଲା ଯେ ।
ପୂର୍ବେ କେଉଁ ଭଗ୍ନ ତପସ୍ୟା ହେତୁରୁ
ଏପରି ଦଣ୍ଡ ଘଟିଲା ଯେ । ୧ ।

ଅହା ନୃପସୁତା ଚନ୍ଦ୍ରମାମୁହିଁ ପଡ଼ିଛି ଧରାରେ ଅରକ୍ଷ ହୋଇ
ପଙ୍କଜ ଆନନ କରି ମଳିନ ମୁଦ୍ରିତ ହୋଇଛି ବେନି ନୟନ
ଯା ଦେଖୁଛି ନେତ୍ର ମୋର ରେ ।
ନୟନ ନ ଫୁଟେ ହୃଦୟ ନଫାଟେ
ପାଷାଣୁ ହେଲା କଠୋରରେ । ୨ ।

କେଡ଼େ ସୁଯୋଗରୁ ମଣି କାଞ୍ଚନ ସଂଯୋଗ କରିଥିଲେ ଭଗବାନ
ତାହା ବିଲୋକି ହୃଦ ପଦ୍ମବନ ପ୍ରସ୍ଫୁଟିତ ହେଲା ସେ ଦିନୁଦିନ
ଶୋକ ହିମତାପ ପଡ଼ି ଯେ ।
ନାରଖାର କରି ମୂର୍ତ୍ତି ପରିହରି
ଶ୍ମଶାନ କି ବିଦ୍ୟମାନ ଯେ । ୩ ।

ବନ୍ଦନ କରୁଛି ତୁମ୍ଭଙ୍କୁ ମୁହିଁ        ହୃଦୟେ କଷ୍ଟତେ ଦୟା କି ନାହିଁ
କହୁଥିଲ ପରା ତୁମ୍ଭର ମୁଖ        ବରଷ ଦେଖିଲେ କୋଟି ବଣିଖ
ମରମେ ବାଜୁଛି ମୋର ଗୋ ।
ସେ ସ୍ନେହ ତୁମ୍ଭର        କେଣେ ଗଲା ଧନ
ବୁଝି ଶିଖିଲି ନିଷ୍ଠୁର ଗୋ । ୪ ।

ମୋହର ସ୍ୱଦେଶ ଯିବାର ଶଙ୍କା        ଦେଉଥିଲା ହୃଦେ ବଜ୍ରର ଧକ୍କା
ଏବେ କି ଦୋଷେ ତ୍ୟଜ୍ୟା କଲ ମୋରେ ଦୋଷତ କରି ନାହିଁ ଜାଣିବାରେ
ଥିବ ବା ଅଜ୍ଞାନେ କରି ଗୋ ।
କ୍ଷମାମୟୀ ହୋଇ        କ୍ଷମାଦାନ ବାରେ
କୃପଣ ହେଲ କପରି ଗୋ । ୫ ।

କେ କହିବ ଆଉ ମୃଦୁ ବଚନ        କେ ତୋଷିବ ଦେଇ ବାସ ଭୂଷଣ
କେ ବସିବ ଆସି ମୋହର ଆଗେ        କରିବ ଆଶ୍ୱାସ ଅତି ସରାଗେ
କେହୁ ଦେବ ମୋତେ ଅଣ୍ଟ ଗୋ ।
ସର୍ବ ବିଷୟରେ        ମୁହିଁ ଅଛି ସହି
ଚିତ୍ତେ ଚିନ୍ତା ନ କରିବ ଗୋ । ୬ ।

ମୋ ନିମନ୍ତେ କେତେ କଷ୍ଟ ସହିଲ        ଅପମାନ ସାଗରରୁ ତାରିଲ
ଅଟଳ ପ୍ରତିଜ୍ଞା ତୁମ୍ଭେ ରଖିଲ        ଧର୍ମ ପଥରୁ ଟଳେ ନ ଟଳିଲ
ଧର୍ମ ମୂଳ ଏବା କଲ ଗୋ ।
ଅତି ଧର୍ମବନ୍ତ        ଅଟ ମୋର ବନ୍ଧୁ
ସେ ଧର୍ମ ରହିଲା ନାହିଁ ଗୋ । ୭ ।

ସର୍ବ ଗୁଣାଲଙ୍କୃତ ମୋର ବନ୍ଧୁ        ଶୀତଳେ ଯେମନ୍ତ ଅଟଇ ବନ୍ଧୁ
ଶୋଭରେ ରମ୍ଭା ନୋହିବେ ସମାନ        ସଙ୍ଗୀତରେ ଦ୍ରୌପଦୀ ଯେସନ
ସୀତାୟାଙ୍କ ପରି ସତୀ ଗୋ ।

ଅଭିମାନେ ଝୁଝି- ବାରେ ପଶିଗଲେ
ତୁମ୍ଭେ କଲ ସେହି ଗତି ଗୋ । ୮ ।

କାନ୍ଦୁଛନ୍ତି ତବ ସପରିବାର କାନ୍ଦୁଛନ୍ତି ଦାସ ଦାସୀ କିଙ୍କର
କାନ୍ଦୁଛନ୍ତି ପ୍ରଜା ଅକୁଳ ହୋଇ କାନ୍ଦେ ଶଙ୍ଖ ନଦୀ କରୁଣା ବହି
କାନ୍ଦୁଛନ୍ତି ପଶୁ ପକ୍ଷୀ ଗୋ ।
ଗୁଣ ଗୁଣି ତବ ପ୍ରତିଷ୍ଠିତା ଦେବୀ
କାନ୍ଦନ୍ତି କନକ ଦୁର୍ଗା ଗୋ । ୯ ।

କାନ୍ଦୁଛନ୍ତି ତବ ଧର୍ମର ଭାଇ * କାନ୍ଦୁଛନ୍ତି ତବ ଭଉଣୀ ଦୁଇ
ତାହାଙ୍କ ଅର୍ଜିଲ କଏ ସହିବ ଖେଳାଇ ଭୋଜନ ଆଉ କେ ଦେବ
ସତେ ଦେଲ ଯେତେ ସୁଖ ଗୋ ।
ଚିର ନିଦ୍ରାରେ ତ ଶାୟିତ ହୋଇଲ
ଦୁଃଖ ସମୁଦ୍ରେ ଭସାଇ ଗୋ ।୧୦।

କାନ୍ଦୁଛନ୍ତି ତବ ପରିଣ ପତି ତାହା ଦେଖି ହୃଦ ଦ୍ରଏ କରତି
ନିକଟ ହୋଇଲେ କ୍ଷଣେ ଅନ୍ତର ଚିନ୍ତେ ମଣୁଥିଲ ଯୁଗ ପ୍ରକାର
ଏବେ ନିଜେ ତ୍ୟାଗ କଲ ଗୋ ।
ତୁମ୍ଭେ ଏକା ସିନା ଅନ୍ୟାୟ କରିଲ
ପଦେ ଯା ନିକଟ ଗଲ ଗୋ ।୧୧।

ବିଦେଶେ ବାଣିଜ୍ୟେ କରିବେ ଯେବେ କଣ୍ଠ ପୁଡୁଥିଲ କେତେ ସବେଗେ
କରୁଥିଲ ଶୋକ ଅତି ଦୁଃଖେଣ କଣ୍ଟୁ ଦିନ ଯେବେ ଯିବ ବିଢଣ
ସପତ୍ନୀ ହେବା ଡ଼ରେ ଗୋ ।
ଏବେ କାହାକୁ ତ ସମର୍ପିଣ ଗଲ
ସହିଲ ଛଡ ତୁମ୍ଭର ଗୋ ।୧୨।

---

* ଏଠାରେ ମୋର ପୂଜ୍ୟପାଦ ପତିଙ୍କୁ ଲକ୍ଷ୍ୟ କରାଯାଇଅଛି । ମୋର ଭାତୃବଧୂ ଶ୍ରୀ ଶ୍ରୀ ଶ୍ରୀ ସୁବର୍ଣ୍ଣୀ ସାହେବାଙ୍କର ଏହାଙ୍କଠାରେ ସହୋଦର ଅପେକ୍ଷା ଅଧିକ ସ୍ନେହ ଓ ସମ୍ମାନ ଥାଇ ସଜୀବ ଯାବତ ଭାର ଏହାଙ୍କ ଉପରେ ନ୍ୟସ୍ତଥିଲା—ଲେଖିକା

ଶେଷାବସ୍ଥାକୁ ବହୁଛ ଯେ କାଳେ    ମୋତେ ସବୋଧି ପୃଚ୍ଛିଲ ସଧୀରେ
ମୋ ତହୁଁ ଶୁଣିଲ ପ୍ରତି ଉତ୍ତର    ପତିଙ୍କୁ ବୋଧିଲ ମୃଦୁ ବାଣୀରେ
ସେ ସ୍ନେହ କାହିଁ ରହିଲ ଗୋ ।
ଏବେ ତୁମ୍ଭ କାନ୍ତ    କରୁଛନ୍ତି ଶୋକ
ଆସି ଆଶ୍ୱାସନା କର ଗୋ ।୧୩।

ଦିନେ ଶ୍ରୀମୁଖ ମଳିନ ଦେଖିଲେ    ଭୟକରି ତତେ କେତେ ପ୍ରକାରେ
"କାହିଁ ତୁମ୍ଭ ଭ୍ରାତ ଶ୍ରୀମୁଖ ଛବି    ଉତ୍ତୁରି ଯାଉଛି ତତେ କି ଭାବି
କିଛି ଦୋଷ କରି ନାହିଁ ଗୋ ।"
ଭୟେ ମୋ ହୃଦରେ    ରହିଣ ଲପନ
ଅଶ୍ରୁ ଢାଳି ପ୍ରାଣସହୁ ଗୋ ।୧୪।

ଅଣହେଳା ହେବ ବୋଲି ଯୋଗଣ    ଆପଣା ଶ୍ରୀହସ୍ତେ ଯୋଗାଡ଼ ଦେନି
ଆନ ସେବା ଦେଇ ଦାସୀଙ୍କ କରେ    ପଦ ସେବାକର ଆପଣା କରେ
ସ୍ନେହ ଊଣା ହେବ ବୋଲି ଗୋ ।
ଏତେ ବଡ଼ ସ୍ନେହ    କରି ଗଲା କାଟି
ଦେଇ କରିଗଲ ଶୂନ୍ୟ ଗୋ ।୧୫।

କେତେ ଦେବ ଦେବୀ କଲି ସ୍ଥାପନ    କିପରି ହୋଇବ ଋଣ ମୋଚନ
ପତିଙ୍କ ଯେତେ ମଙ୍ଗଳ କାମନା    ଦେଶ ଉନ୍ନତି କରିବା ଭାବନା
ଏସବୁ କଲି ବ୍ୟର୍ଥ ଗୋ ।
ଝୁରି ଝୁରି ଦିନ    କଟାଇବା ସିନା
ଶେଷରେ ହେଲା ନିୟତି ଗୋ ।୧୬।

ଏମାନ ସ୍ମରଣ କରିଣ ମୁହିଁ    ଦିନ ଅପର ହେଉଛିରେ ସହି
ନିର୍ଲଜ୍ଜ ପରାଣ ନଯାଏ ଛାଡ଼ି    କେତେଦିନ ରହିବ ଦୁଃଖ ପଡ଼ି
ମୋତେ ନ ହୁଏ ଗୋଚର ଗୋ ।

ମଣିହରା ଫଣି-　　　　　　　　　ବଡ ହେଲ ସଦା
ପ୍ରାଣ ହୁଏ କଳବଳ ଗୋ ।୧୭।

ସ୍ୱର୍ଗ ଧାମେ ତୁମ୍ଭେ ବଜେ କନ୍ଦଣ　　　　　　ପଦ୍ମଙ୍କ ପରେ କୃପା ବରଷଣ
କରୁଥାଅ ବୋଲି ମୋର ପ୍ରାର୍ଥନା　　　　　କର୍ଦ୍ଦମ୍ଭୁ ନହେବ ଶଶିବଦନା
ପୂର୍ଣ୍ଣ ସ୍ନେହ ରଖିଥିବ ଗୋ ।
ଯେତେ ଦୂରେ ଥିଲେ　　　　　　　　ତୁମ୍ଭେ ତାଙ୍କ ପରି
ସେ ଅନ୍ତରେ ତୁମ୍ଭ ଧବ ଗୋ ।୧୮।

ଅହେ କୃପାମୟ ଶ୍ରୀ ରଘୁବୀର　　　　　　ସୀତାଙ୍କ ବରହେ ହୋଇ ଅଥିର
କେତେ ସନ୍ତାପିତ ହୋଇଛ ହର　　　　　ତୁମ୍ଭେ ଜାଣ କଷ୍ଟ ଦୁଃଖ ସବୁର
ଏତେ ଭିକ୍ଷା ମାଗେ ପଦେ ହେ ।
ରତ୍ନମାଳା ଦେବୀ　　　　　　　　　　ମୋ ଯୁବରାଣୀଙ୍କୁ
ସ୍ଥାନ ଦଅ ତବ ପଦେ ହେ ।୧୯।



୨

## କଳାମାଣିକ ବୃନ୍ତରେ

ସୁରମା ବ୍ରଜନନ୍ଦନୀ		ମୋ ପ୍ରାଣ ଈଶ୍ୱରୀ
କାହିଁ ଛାଡ଼ି ଗଲୁ ମୋତେ ଭୁବ  ଏକାକର
ଜୀବ ଧନରେ
ତୋଲାଗି ଯିବ ଏହୁ ଜୀବନରେ । ୧ ।

ପିଣ୍ଡ ରଖି ପ୍ରାଣ ମୋର		କେହ୍ନୁ ଦେଶ ଗଲୁ
ଅଗାଧ ସମୁଦ୍ରେ ମୋର ଭେଳା ବୁଡ଼ାଇଲୁ
ମନ୍ଦ ଧାତାରେ
ମନେ ରଖିଥିଲୁ କି ଅନ୍ତରାରେ । ୨ ।

ନୟନ ପ୍ରତିମା ମୋର		ମୋ ନୟନ ଜ୍ୟୋତି
ଅନ୍ତର ହେବାରୁ ଚଉଦଗ  ଦଶେ  ସଢ
ଚନ୍ଦ୍ରମୁଖୀରେ
ତୋହଲାଗି ହୋଇଗଲି ଦୁଃଖୀ ରେ । ୩ ।

ହଂସତୁଳ ତୁଳରେ ନିଦ୍ରା		ତୋତେ ନ ଲାଗଇ
ଭୂମିରେ ଶୟନ କରଅଛୁ ପ୍ରାଣସହି
ଏହା ଦେଖି ରେ
ଫୁଟି ନଯାଏ ମୋ ବେନ ଅକ୍ଷି ରେ । ୪ ।

ପିଠି କରି ଦିନେ ହେଲେ		ନ ଶୋଇଛୁ ଧନ
ଏବେ ଏ ଶିଢ ଧରିଛୁ ଲଗେ ଅନୁମାନ
ଖିର ଗୀର ଗୋ
ଶୁଣି କୋପିଲୁ କି ନାଗବର  ଗୋ । ୫ ।

ମୋ ପ୍ରାଣକୁ ବଢେ କର          କରୁଛ ଦାଇନ
ବନା ଦୋଷେ ରୁଷି ଶୋଇଅଛୁ ପ୍ରାଣଧନ ।
ଦୟା ବନ୍ଧରେ
ବେଗେ ଉଠ ଉଠ ପ୍ରାଣପନ୍ଥ ରେ । ୬ ।
କେଳୀ କଉତୁକୀ ମୋର          ପ୍ରେମର ପିତୁଳା
ଦନ ମୋ ଅସର ହେବ ସ୍ୱନ ଦନ ଭଳ
କନକାଙ୍ଗି ରେ
କାହୁଁ ପାଇବ ତୋପର ସଙ୍ଗୀ ରେ । ୭ ।
ସ୍ମରକ-କରକ-ଦନ୍ତ          କର ସ୍ୱଙ୍ଗଗତ
ତୋତେ ଦେଖି ଫୁଲ୍ଲ ହେଉଥିଲା ମୋର ଛାତ
ରସଲତା ରେ
କାହୁଁ ପାଇବ ତୋପର କାନ୍ତା ରେ । ୮ ।
ଶୟନେ ଅନ୍ତର କର          ଥାଉ ହୃଦହାର
ଭଲ ହେବ ବୋଲି ଚଢ଼େ କରଣ ବଗୁର
ରସାଳସି ରେ
ତୋତେ ପାଉଥିଲି ଗଙ୍ଗେ ଝାସିରେ । ୯ ।
ଅନ ରନ୍ଧନ ଦେଇଣ          ବ୍ରାହ୍ମଣୀର କରେ
ଯୋଗଣ ଦ୍ରବ୍ୟ ସଜାଡ଼ୁ ଅପଣା ଶ୍ରୀକରେ
ଗୁଣନଧି ରେ
ସବୁ ସରିଗଲା ମୋର ବୁଦ୍ଧି ରେ ।୧୦।
ମଣୋହିର ବେଳ ହେଲା          ବୋଲି ଦଅ ଡାକ
ଏତେ କଷ୍ଟ ପଡ଼େ ଏବେ ଦର୍ଶନ ନାହିଁକ ।
ସ୍ନେହାଧୀନା ରେ
ଚଢେ କିଁଥେ ନକରୁ ଘେନା ରେ ।୧୧।

ଘଡ଼ିଏ ଅନ୍ତର ହେଲେ　　　　ପେଷୁଥାଇ ଦାସୀ
ଏବେ ବନାଦୋଷେ କପାଁ ଶୋଇଅଛୁ ରୁଷି
ଘନକେଶି ରେ
ବୋଧିଦଅ ଥରେ ମୋତେ ଅସି ରେ ।୧୨।
ମନ୍ତ୍ରୀପର ବୁଦ୍ଧି ଦାତା　　　　ତୋ ଅମୀୟ ସ୍ନେହ
ମୂର୍ତ୍ତି ରହିଅଛି ଅହା କ କଠିନ ଦେହ ।
ଗୁଣଲତା ରେ
ସବୁ ଭୋଗ ଲାଗେ ମୋତେ ପିତା ରେ ।୧୩।
ଶ୍ରୀମୁଖ ମଳଣ ମୋର　　　　ନ ଦେଖୁ ଥିବାର
ଏଡ଼େ ସ୍ନେହ କାହିଁଗଲା ତୋର ନାଶବର
ରତ୍ନମାଳା ରେ
କାଟିଦେଇ ଗଲୁ ମୋର ଗଳା ରେ ।୧୪।
କେ ମୋହର ମନ ଜାଣି　　　　ସେବା ଯେ କରିବ
କୋଧ ସମୟରେ କେହୁ ଶାନ୍ତ କରାଇବ ।
ଚତୁ ବୋଧିରେ
ମନ କେ ତୋଷିବ କହ ବୁଦ୍ଧି ରେ ।୧୫।
ଅସ ଅସ ପ୍ରାଣଧନ　　　　ମୋ କୁଟିଲକେଶି
ଦେଖାଇଣ ଦଅ ଥରେ ତୋ ଶ୍ରୀମୁଖ ଶଶୀ
ଗୃହବାସି ରେ
ଶୁଣୁ ନାହୁଁ ନଥିଲୁ ତ ରୁଷି ରେ ।୧୬।
ପଦ୍ମାକ୍ଷୀ ପଦ୍ମବାସିନୀ　　　　ରେ ସ୍ନେହ ବତ୍ସଳା
ମତ୍ତଗଜ ଗାମିନୀ ତୁ ଅଟୁ ପ୍ରେମଶୀଳା
ମୃଗନେତ୍ରି ରେ
ଛନପୁରେ ନାହିଁ ମୋର ଗତି ରେ ।୧୭।

ଆହା ରେ ବ୍ରଜନନ୍ଦନୀ          କେହ୍ନେ ନେଲୁ ତୋତେ
ମୃଦୁବଚନେ ଆଶ୍ୱାସ କରିବ କେ ମୋତେ
ନିଦ୍ରା ପରେ ଗୋ
ପଦ ମଞ୍ଜାଳିବ କେ ବା କରେ ଗୋ ।୧୮।
ସ୍ୱଳ୍ପ ଦୋଷେ ରୁଷି          ବସିବୁ କାହାକୁ ଧନ
କେ ତୋଷିବ ନାନାରସେ ମୋର ମନପ୍ରାଣ
ଜୀବ ଧନ ରେ
ସବୁ ହୋଇଗଲୁ ମୋ ସ୍ୱପନ ରେ ।୧୯।
ବୀଣା-ପିକ-କଣା-ସୁସ୍ୱର          ମଧୁ ଭାଷିଣି
ଶିରୀଷ କୋମଳ ଅଙ୍ଗ ଚମ୍ପକ ବରନି
ସ୍ୱର୍ଣ୍ଣଦେହ ରେ
ଅଛ ଗୁଣବତୀ ଗୁଣଗ୍ରାହୀ ରେ ।୨୦।
ଅଶନ ବସ ପରିଧେୟ          ବସନ ଯେ ଅହି
ତାମ୍ବୁଲ କର୍ପୁର ପିଡା ଲାଗେ ପ୍ରାଣସହି
ତୋର ବିନାରେ
ଯାଉଛି ସର ମୃହିଁ ନଦୀନାରେ ।୨୧।
ତୋର ବିନା ଚନ୍ଦ୍ର ଲାଗେ          ଅନଳ ସମାନ
ଦୂର ହୋଇଗଲୁ ଯେଣୁ ମୋର ପ୍ରାଣଧନ
ଅଙ୍ଗଦାହା ରେ
କରୁଛି ନପାଇ ତୋର ସାହାରେ ।୨୨।
ହମକୁ ଜପୁମ ହେଇ          ଜପୁମକୁ ହମ
ହୋଇ ହେଉଥାଉ ସାହା କର୍ମ ହେଲା ବାମ
ଖଞ୍ଜନାକ୍ଷି ରେ
କପର ପୂର୍ଚ୍ଛିବି ତୋତେ ସଖୀ ରେ ।୨୩।

ଜୀବନ୍ତରେ ଯେତେ ସୁଖ          ଦେଲ୍ ଜୀବଧନ
ଅସି କହୁଦଅ ବାରେ ସୁପ୍ରେମ ବଚନ
ଅଶ୍ରୁ ମୋର ଗୋ
ଅସି ପୋଛି ଦେଇ ଶାନ୍ତ କର ଗୋ ।୨୪।

ଦୟା ହୃଦୟରେ ବହୁ          କୃପା ସୁଧା ବୃଷ୍ଟି
ଚନ୍ଦ୍ରା ବର୍ଷି ଦଅ ନାଶି ଅରେ ବମ୍ବ ଓଷ୍ଠି
ବଧୂମୁଖି ରେ
ଥରେ ଅସି ଯାଅ ଦୁଃଖ ଦେଖି ରେ ।୨୫।

"ଅହେ ପ୍ରାଣମଣି ମୋର !          ନକାନ୍ଦ" ଏ ବାଣୀ
ଦଅ ଦୂରରୁ ଶୁଣାଇ ଯାଉ ଦୁଃଖ ଶ୍ରେଣୀ
ନୀଳବାସ ଗୋ
ଚଞ୍ଚଳେ ମୋତେ କର ଅଶ୍ୱାସ ଗୋ ।୨୬।

ମଣୋହିର ବେଳେ କରେ          ଧରଣ ବ୍ୟଞ୍ଜନ
ମଣୋହିର ଶେଷେ କରୁ ତାମ୍ବୁଲ ଅର୍ପଣ
ହୃଦହାରେରେ
ଦିନ ମୋ ହୋଇଗଲା ଅସରରେ ।୨୭।

ତୋହଠାରେ କଛି ଦୋଷ          ନାହିଁ ମୁଁ କରଣ
ବନା ଦୋଷେ ଛାଡ଼ିଗଲ୍ ମୋ ଜୀବ ଜୀବନ
ହୃଦନାଥ ରେ
ତୋହ ବନା ନ ଦଶଇ ବୃନ୍ଦି ରେ ।୨୮।

ଦଣ୍ଡେ ଦଣେ ପ୍ରତି ଦଣେ          'ଦଣେ ତୋ ମାଧୁରୀ
ଜୀବନ ଯାଏ ବାହାର ତୋତେ ଝୁରି ଝୁରି
ଚଳାପାଙ୍ଗି ରେ
ଦଣେ ଦଣେ ଦଣେ ତୋର ଭଙ୍ଗୀରେ ।୨୯।

କେତେ ତପସ୍ୟାରେ ତୋତେ　　　ମୁଁ ପାଇଣ ଥିଲି
ଭଗ୍ନ ତପସ୍ୟାରୁ ସିନା ନିଧି ହରାଇଲି
ନବବାଳା ରେ
କା'ଭୁଲେ କରିବ ଲୀଳା ଖେଳା ରେ ।୩୦।
ଦିନେ ହେଲେ ହସି ନାହିଁ　　　ରସି ନାହିଁ କେଳେ
ମନ ଭାଙ୍ଗି କଥା ହୋଇ ନାହିଁ ତୋର ଭୁଲେ
ମନ କଥାରେ
ମନରେ ରହିଲା ହୋଇ ବ୍ୟଥାରେ ।୩୧।
ପୂର୍ବ ଜନ୍ମେ କେଉଁ ପାପ　　　ମୁହିଁ କରିଥିଲି
ପାଇ ରତ୍ନନିଧି ଭୋଗ କରି ନପାରିଲି
ହେଲୁ ଦୂର ଗୋ
ମୋ ଭାଗ୍ୟକୁ ସରିଲା ସଂସାର ଗୋ ।୩୨।
ମୋର କର ଧରି ସଖି　　　ପାଇଲୁ ତୁ ଦୁଃଖ
ସୁଖ ଦେଇ ନପାରିଲି ଜୀବନ ମୋ ଧିକ
ବୁଦ୍ଧି ହୀନରେ
ବହିକଲି ସବୁ ବଡ଼ମ୍ବନା ରେ ।୩୩।
କାହାକୁ ଗ୍ରାସ ଦେଇଣ　　　ଛଡ଼ାଇଣ ଥିଲି
ସେହି ପାପେ ଏହି ଦୁଃଖ ଏବେ ଭୋଗ କଲି
ତୁହି ସତୀ ଗୋ
ତୋହ ବିନା ନାହିଁ ମୋତେ ଗତି ଗୋ ।୩୪।
ଏ ସଂସାରେ ଦେଖୁଛି　　　ଅଛନ୍ତି ଯେତେ ନାରୀ
ପାଦଘସା ପଥରକୁ ତୋ ନୋହିବେ ସରି
ରସବଢରେ
ଭାବିଲେ ଖସି ଯାଉଛି ଧୃତି ରେ ।୩୫।

ତରୁଣି ତିଲକମଣି ଥିଲୁ ମୋର ପ୍ରିୟା
ସ୍ମରଣ କରଣ ଫାଟି ଯାଏ ମୋର ହିଆ
କଳକଣ୍ଠି ରେ
ମୋର ହାତୁ ଫିଟିଗଲୁ ଗଣ୍ଠିରେ ।୩୬।

ତୋ ଅଧରୁ ମଧୁ ପିଇ କି ସୁସ୍ୱାଦୁ ସିତା
ତୋହ ବିନୁ ଏବେ ସବୁ ଭୋଗ ଲାଗେ ପିତା
ତୋର ମୁଖରେ
ଦେଖି ଭୁଲିଥିଲି ସର୍ବ ଦୁଃଖରେ ।୩୭।

ବିଦେଶ ଯିବା ମେଲାଣି ମାଗିବାର କାଳେ
ବିଚ୍ଛେଦ ଭୟରେ ଶଯ୍ୟା କରୁ ଗୃହୁଣୀଳେ
ଭିଳ ଭିଳରେ
ଦିନ ନ ସରୁଛି ନବବାଳୀରେ ।୩୮।

ଏତେ ସ୍ନେହକର ଧନ ମୂର୍ଚ୍ଛିଲି କେସନ
ଦଣ୍ଡକ ଅନ୍ତର କୋଟି ଯୁଗ ମନେ ଦେନ
ରସବତିରେ
ଧାସ୍ତି ଫାଟି ନ ଯାଉଛି ଛଢ ରେ ।୩୯।

ଅହେ ବନ୍ଧୁ କି ପାପରୁ ହେଲି ଏତେ ପର
ସର୍ବ ସୁଖ ଘେନଗଲୁ ନପାରେ ପାସୋର
ଦୁଃଖ ଯାକହେ
ମୋ ଭାଗ୍ୟକୁ ରହିଲା ଏତକ ହେ ।୪୦।

ସମସର ଯୁବସିଂହ ବୀରସିଂହ ଦେବ
ରାଣୀଙ୍କ ବିୟୋଗ ଶୋକେ କରନ୍ତି ଅନେକ
ମୋ ଗୁହାରି ହେ
ଶୁଣ ଶୁଣ ଅହେ ବଂଶୀଧାରୀ ହେ ।୪୧।

ରତ୍ନମାଳାଙ୍କୁ ସ୍ୱର୍ଗରେ ସ୍ଥାନ ଦଅ ହର

ତୁମ୍ଭବିନା ମୁକ୍ତିଦାତା କେ ନାହିଁ ତାଙ୍କର

ଚକ୍ରଧାରୀ ହେ

ପାପତାପ ନାଶ ଚକ୍ର ଧର ହେ ।୪୬।




ବ୍ରହ୍ମପୁର ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସରେ ଶ୍ରୀ ହାଡ଼ୁ ସମ୍ବୁଗୁରୁଙ୍କ ଦ୍ୱାରା

ମୁଦ୍ରିତ । ୧୯୩୮ ।

